# ବିଜ୍ଞାନର ଉପକାରିତା







ପ୍ରମୋଦ କୁମାର ମିଶ୍ର

# ବିଜ୍ଞାନର ଉପକାରିତା

ଲେଖକ

ପ୍ରମୋଦ କୁମାର ମିଶ୍ର

ପ୍ରକାଶକ

**କୋଣାର୍କ ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୨

# ବିଜ୍ଞାନର ଉପକାରିତା

ଲେଖକ :

ପ୍ରମୋଦ କୁମାର ମିଶ୍ର

ପ୍ରକାଶକ

ଚନ୍ଦ୍ରଶେଖର ପାତ୍ର

**କୋଣାର୍କ ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୨

୧୯୯୫

ମୁଦ୍ରଣ

**ଟାଇମ୍‌ସ ଡ଼ି.ଟି.ପି ସେଣ୍ଟର**

କାଜିବଜାର, କଟକ-୧

**କୋଣାର୍କ ପ୍ରିଣ୍ଟର୍ସ**

ଖଟବିନସାହି, କଟକ-୮

ମୂଲ୍ୟ **ଛଅ ଟଙ୍କା**

# ସୂଚୀ





# ବିଜ୍ଞାନର ଉପକାରିତା

ଗୋପାଳପୁର ଗାଁଟି ସହରଠାରୁ ବହୁ ଦୂରରେ । ସେଠାରେ ଲୋକମାନେ ସମସ୍ତେ ଚାଷ କାମ କରି ଚଳନ୍ତି । ଧାନ ଏ ଅଞ୍ଚଳରେ ପ୍ରଧାନ ଫସଲ । କେଉଁ ବର୍ଷ ବନ୍ୟା ହେଲାଣି ତ କେଉଁ ବର୍ଷ ମରୁଡ଼ି । ଚାଷୀମାନେ ଧାନ ବୁଣି ସାରିଲା ପରେ ଅମଳ କରିବେ ତାଙ୍କର ଆଶା ନଥାଏ । ବର୍ଷା ନ ହେଲେ ଗ୍ରାମବାସୀମାନେ ହୋମ କରନ୍ତି ।

ଯେଉଁ ବର୍ଷ ପାଳକ ଭଲ ହୁଏ ସେ ବର୍ଷ ଚାଷୀମାନେ ଭଲ ଅମଳ କରିବେ ବୋଲି ଆଶା କରନ୍ତି । ପୋକ ଦାଉରୁ ଫସଲକୁ ରକ୍ଷା କରିବା ତାଙ୍କ ପକ୍ଷେ ସମ୍ଭବ ହୁଏ ନାହିଁ । ଚାଷୀ ମାଟିର ଶରୀରକୁ ମାଟିରେ ମିଶାଇ, ମୁଣ୍ଡ ଝାଳ ତୁଣ୍ଡରେ ମାରି ଯେଉଁ ଫସଲ ବଢ଼ାଇ ଥାଏ ତାକୁ ବିଭିନ୍ନ କୀଟପତଙ୍ଗ ଖାଇ ନଷ୍ଟ କରି ଦିଅନ୍ତି । ବିଚରା ଚାଷି ମୁଣ୍ଡରେ ହାତ ଦେଇ ବସେ । ଚାଷୀମାନଙ୍କ

ଅମଳ ନ ବଢ଼ିବାରୁ ସେମାନଙ୍କ ଚଳଣିରେ କୌଣସି ପରିବର୍ତ୍ତନ ହେଉ ନଥାଏ । ଗ୍ରାମବାସୀମାନଙ୍କ ଆର୍ଥିକ ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା ।

ଦିନେ ଗ୍ରାମ ସେବକ ବାବୁ ଗୋପାଳପୁର ଗାଁରେ ପହଞ୍ଚିଲେ । ତା ସହିତ ରାଜଧାନୀରୁ ଜଣେ କୃଷି ପଣ୍ଡିତ ଆସିଥାନ୍ତି । ଗାଁରେ ପ୍ରଚାର କରାଗଲା ସଂଧ୍ୟାରେ ଚାଷୀମାନଙ୍କର ଏକ ସଭା ହେବ । ଗ୍ରାମ ସେବକ ବାବୁ ଏବଂ ଭୁବନେଶ୍ୱରରୁ ଆସିଥିବା କୃଷି ପଣ୍ଡିତ ''ଆଧୁନିକ ବୈଜ୍ଞାନିକ ପ୍ରଣାଳୀରେ ଚାଷ'' ବିଷୟରେ ଲୋକମାନଙ୍କୁ ବୁଝାଇବେ । ଚାଷିମାନଙ୍କ ମଧ୍ୟରେ ଆଗ୍ରହ କହିଲେ ନସରେ । ସନ୍ଧ୍ୟାବେଳେ ଗାଁ ମୁଣ୍ଡରେ ଥିବା ଠାକୁରାଣୀ 'ମଣ୍ଡପରେ ସଭାହେଲା ।

## ଉନ୍ନତ ଚାଷ

କୃଷି ପଣ୍ଡିତ ମହାଶୟ ତାଙ୍କ ଭାଷଣ ଆରମ୍ଭ କଲେ । ''ଭାଇମାନେ ଆମକୁ ପୁରୁଣାକାଳିଆ ଚାଷ ପ୍ରଣାଳୀ ଛାଡ଼ି ଆଧୁନିକ ବୈଜ୍ଞାନିକ ପ୍ରଣାଳୀରେ ଚାଷ କରିବାକୁ ପଡ଼ିବ । ଆପଣମାନେ କାଠ ଲଙ୍ଗଳ ବ୍ୟବହାର କରି ଏ ପର୍ଯ୍ୟନ୍ତ ଚାଷକରି ଆସୁଛନ୍ତି ସତ, କିନ୍ତୁ ଆମର ଅଧିକ ଫସଲ ପାଇବାକୁ ହେଲେ ଏହାଦ୍ୱାରା କମି ଚାଷ ଭଲ




ହୋଇପାରିବ ନାହିଁ । ମାଟି ଯେତେ ଅଧିକ ଖୋଳି ହେବ ସେତେ ଉର୍ବର ହେବ । ଆପଣମାନେ ବୋଷଙ୍କ ଲୁହା ଲଙ୍ଗଳ କିମ୍ବା କଳ ଲଙ୍ଗଳ  ବ୍ୟବହାର କରନ୍ତୁ । ଚାଷୀ ନିଜେ ଇଚ୍ଛା



କଳ ଲଙ୍ଗଳରେ ଚାଷ

କଲେ କଳ ଲଙ୍ଗଳ କିଣିପାରିବ କିମ୍ବା ସରକାରଙ୍କ ଠାରୁ ଭଡ଼ାରେ

ଆଣି ପାରିବ । ଏହାଦ୍ୱାରା କମ୍ ସମୟରେ ବେଶି ଜମି ଚାଷ କରିହେବ ।

କୃଷି ପଣ୍ଡିତେ ପୁଣି କହିଲେ--ଅଧିକ ଅମଳକ୍ଷମ ଉନ୍ନତ ବିହନ ବ୍ୟବହାର କଲେ ଅଧିକ ଅମଳ ହେବ ଏବଂ ଗଛଗୁଡ଼ିକ ଭଲହେବ । ଜଣେ ଚାଷି ପଚାରିଲା--ଏ ବିହନ ଆମେ କେଉଁଠାରୁ ପାଇବୁ ? କୃଷି ପଣ୍ଡିତ କହିଲେ--ସରକାରଙ୍କର କୃଷି ଗବେଷଣା କେନ୍ଦ୍ର ଅଛି । ସେଠାରେ ଏହି ଉନ୍ନତ ଅଧିକ ଅମଳକ୍ଷମ ବିହନ ଅମଳ କରାଯାଉଛି । ବ୍ଲକ ଅଫିସ୍ ମାଧମରେ ଲୋକମାନଙ୍କୁ ଯୋଗାଇ ଦିଆଯାଉଛି ।

କେବଳ ଧାନ ନୁହେଁ ବିଭିନ୍ନ ପନିପରିବା ମଞ୍ଜି ଓ ଚାରା ମଧ୍ୟ ଯୋଗାଇ ଦିଆଯାଉଛି । କଟକ ଏବଂ ଭୁବନେଶ୍ୱର ଠାରେ ଧାନ ଗବେଷଣା କେନ୍ଦ୍ର ଏବଂ ସାକ୍ଷୀଗୋପାଳ ଠାରେ ନଡ଼ିଆ ଗବେଷଣା କେନ୍ଦ୍ର ଅଛି । ଧାନ ଗବେଷଣା କେନ୍ଦ୍ରରୁ ଉନ୍ନତ ଧାନ ତଳି ଏବଂ ନଡ଼ିଆ ଗବେଷଣା କେନ୍ଦ୍ରରୁ ନଡ଼ିଆ ତଳି ପାଇ ପାରିବେ । ଭାରତୀୟ କୃଷି ପଣ୍ଡିତମାନେ ବାହାର କରିଥିବା ନୂଆ ନୂଆ ଧାନ ବିହନ ହେଲା-ଜୟା,ପଦ୍ମା, ଆଇ ଆର-୮, ଇତ୍ୟାଦି ।

କେତେକ ଚାଷି ପଚାରିଲେ--ଧାନ ବୁଣିବା ଏବଂ ତଳି ରୋଇବା ପ୍ରଣାଳୀ ବିଷୟରେ ଆମକୁ ଟିକିଏ କହନ୍ତୁ । କୃଷି ପଣ୍ଡିତ ମହାଶୟ କହିଲେ--ଧାନ ବୁଣିବା ଏବଂ ରୋଇବା ଯନ୍ତ୍ର ବାହାରିଛି । ଆପଣମାନେ ଧାଡ଼ିକରି

ଧାନ ବୁଣିଲେ କିମ୍ବା ରୋଇଲେ ଗଛ ଭଲହେବ । ଗଛ ଅଧିକ



ବିହନ ବୁଣା ଯନ୍ତ୍ର

ଖାଦ୍ୟସାର ପାଇଲେ ଫଳ ଭଲ ହେବ ଏବଂ ଅଧିକ ଅମଳ




ହେବ । ଏହାଦ୍ୱାରା କମ୍ ବିହନ ଲାଗିବ ଏବଂ ବେଶି ଗଛ ନଷ୍ଟ

ହେବନାହିଁ । ଧାଡ଼ିରେ ବିହନ ବୁଣିବା ଯନ୍ତ୍ର କିଣିବାକୁ ମିଳୁଚି -




ତିନି ଧାଡ଼ି ବୁଣା ଯନ୍ତ୍ର

ରାମ ପ୍ରଧାନ ଜଣେ ବୟସ୍କ ଚାଷି । ସେ ଠିଆହୋଇ ପଚାରିଲେ--ଯଦି ପାଳକ ଠିକ୍ ସମୟରେ ନହୁଏ ତେବେ ଆମ୍ଭେମାନେ କ'ଣ କରିବୁ ? କୃଷି ପଣ୍ଡିତ କହିଲେ--ଆଜିକାଲି ପାଣି ପମ୍ପ କିଣିବାକୁ ମିଳୁଛି । ସରକାର ମଧ ଭଡ଼ାରେ ପମ୍ପ ଯୋଗାଇ ଦେଉଛନ୍ତି । ପମ୍ପଗୁଡ଼ିକ କିରୋସିନ୍ ଡ଼ିଜେଲ, ଓ ପେଟ୍ରୋଲ ଯେ କୌଣସି ମୋଟର ଦ୍ୱାରା ଚାଲିବ । ସରକାର ମଧ ଉଠା ଜଳସେଚନ ବ୍ୟବସ୍ଥା କଲେଣି । ତେଣୁ ମରୁଡ଼ିର ଆଶଙ୍କା ଆସ୍ତେ ଆସ୍ତେ ଦୂର ହୋଇଯାଉଛି । ନଦୀବନ୍ଧ ଯୋଜନା କରି ଠିକ୍ ସମୟରେ ଜମିକୁ ପାଣି

ଯୋଗାଇ ଦିଆଯାଉଛି । ବନ୍ୟା, ମରୁଡ଼ି ଭଳି ପ୍ରାକୃତିକ




ବିପତ୍ତିକୁ ବିଜ୍ଞାନ ବଳରେ ଆମେ ଏଡ଼େଇ ନେଇ ପାରୁଛୁ ।

## ସାର ବ୍ୟବହାର

ଗୋବିନ୍ଦ ସାହୁ ଗାଁର ଜଣେ ପୁରୁଣା ଚାଷି । ସେ ପଚାରିଲେ--ଜମିର ବଳ କିପରି ବଢ଼ିପାରିବ । ଖଣ୍ଡିଏ ଜମିରେ ବର୍ଷ ବର୍ଷ ଧରି ଗୋଟିଏ ଫସଲ କରିବା ଫଳରେ ଗଛଗୁଡ଼ିକ

ଭଲ ବଢୁନାହିଁ--କୃଷି ପଣ୍ଡିତେ କହିଲେ--ମାଟିକୁ ପରୀକ୍ଷା କରି କେଉଁ ମାଟିରେ କି ପ୍ରକାର ଫସଲ ହୋଇପାରିବ ଜାଣିବା ଦରକାର । ସରକାରଙ୍କର 'ଭ୍ରାମ୍ୟମାଣ ମାଟି ପରୀକ୍ଷା ବିଜ୍ଞାନଗାର' ଅଛି । ଭ୍ରାମ୍ୟମାଣ ବିଜ୍ଞାନ- ଗାରରେ ମାଟି ପରୀକ୍ଷା କରି, ଉପଦେଶ ଅନୁସାରେ ଫସଲ କରିବା ଉଚିତ୍ । ଗଛଗୁଡ଼ିକ ଭଲ ଭାବରେ ବଢ଼ିବା ପାଇଁ, ବେଶି ଫୁଲଫଳ ଧରିବା ପାଇଁ ବିଭିନ୍ନ ରାସାୟନିକ ସାର ବାହାରିଛି ।

ସେଗୁଡ଼ିକ ବଜାରରେ କିଣିବାକୁ ମିଳୁଛି ଏବଂ ସରକାର ମଧ୍ୟ ଯୋଗାଇ ଦେଇଛନ୍ତି । କେତେଗୁଡ଼ିଏ ଜଣାଶୁଣା ରାସାୟନିକ ସାରର ନାମ ହେଲା--ଆମୋନିୟମ୍ ସଲଫେଟ୍, ଆମୋନିୟମ୍ ଫସ୍‌ଫେଟ, କାଲିସିୟମ୍ ନାଇଟ୍ରେଟ୍ ୟୁରିଆ ଇତ୍ୟାଦି କେତେବେଳେ କି ସାର ଦେବାକୁ ହେବ, ତାର ଏକ ଲିଖିତ ବିବରଣୀ ଆପଣମାନଙ୍କୁ ଯୋଗାଇ ଦିଆଯିବ ।

ଅଧିକ ଅମଳ ପାଇଁ ରାସାୟନିକ ସାର ଆପଣମାନେ ବ୍ୟବହାର କରିବା ଉଚିତ୍ । ଆପଣମାନେ ଏହିଗୁଡ଼ିକ ବ୍ୟବହାର ନକରିବା ବେଳେ ଗଛଗୁଡ଼ିକ ଭଲବଢ଼େ ନାହିଁ । ଏବଂ ପତ୍ର ହଳଦିଆ ପଡ଼ିଯାଏ । ଏହାର କାରଣ ମାଟିର ଯବକ୍ଷାରଜାନର ଅଭାବ । ତେଣୁ ଆମୋନିୟମ୍ ସଲଫେଟ୍, କ୍ୟାଲସିୟମ୍ ଆମୋନିୟମ୍ ନାଇଟ୍ରେଟ୍, ୟୁରିଆ ସାର ଦେଲେ ପତ୍ର ସବୁଜ ହେବ ଏବଂ ଭଲ ବଢ଼ିବ ।

ସେହିଭଳି ଫସ୍‌ଫରସ୍‌ର ଅଭାବ ହେଲେ ଫୁଲଫଳ ହୁଏନାହିଁ, ଶସ୍ୟଦାନା ଛୋଟ ହୁଏ ଏବଂ ପତ୍ର ଶୁଖିଯାଏ । ତେଣୁ ଆପଣମାନେ ସୁପର ଫସ୍‌ଫେଟ୍ ସାର ଦେଲେ ଫଳ ଭଲ ହେବ ଏବଂ ଦାନା ବଡ଼ ହେବ । ପଟାସିୟମ୍ ସଲଫେଟ୍ ସାର ଧେଲେ ଗଛର କାଣ୍ଡ ଟାଣହୁଏ, ସହଜରେ କୌଣସି ରୋଗ ଧରିପାରେ ନାହିଁ । ଆପଣମାନେ ବ୍ୟବହାର କରୁଥିବା ଖତରେ ଯଥେଷ୍ଟ ପରିମାଣରେ ଏହିସବୁ ସାର ନଥିବାରୁ ରାସାୟନିକ ସାର ଦେବାକୁ ପଡ଼େ ।

## ଫସଲ ସୁରକ୍ଷା

ଫସଲକୁ ସୁନ୍ଦର ଭାବେ ବଢ଼ାଇ ଆଣିଲା ବେଳେ ଅନିଷ୍ଟକାରୀ କୀଟପତଙ୍ଗ ସବୁ ନଷ୍ଟ କରିଦେଉଛନ୍ତି ।

ଗଛ, ପତ୍ର, ଫଳ, ଫୁଲ୍ ନଷ୍ଟ କରିବା କୀଟ ପତଙ୍ଗ -



ସେଥିପାଇଁ କିଛି ଉପାୟ ଅଛି ?- ପଚାରିଲେ ଜଣେ ଯୁବକ

ଚାଷି । କୃଷି ପଣ୍ଡିତ କହିଲେ--ଅନିଷ୍ଟକାରୀ କୀଟପତଙ୍ଗମାନଙ୍କୁ ମାରିବା ପାଇଁ ଆମର ବୈଜ୍ଞାନିକମାନେ ଗବେଷଣା କରି ବିଭିନ୍ନ ପ୍ରକାର ଔଷଧ ବାହାର କରିଛନ୍ତି । ସେମାନଙ୍କ ଭିତରୁ କେତେକ ତରଳ ଏବଂ କେତେକ ଗୁଣ୍ଡ ଗାମାସିନ୍, ଆଗ୍ରୋସନ୍ ଇତ୍ୟାଦି ଗୁଣ୍ଡ ଔଷଧଗୁଡ଼ିକ ଡଷ୍ଟର ସାହାଯ୍ୟରେ ଏବଂ ଏଣ୍ଡ୍ରେକ୍ସ, ପାରାଥିନ୍




ଇତ୍ୟାଦି ପାଣି ଔଷଧଗୁଡ଼ିକୁ ସିଞ୍ଚନ ଯନ୍ତ୍ର ସାହାଯ୍ୟରେ ଫସଲରେ ପକାଯାଏ । ଫଳରେ ପୋକଗୁଡ଼ିକ ମରିଯାନ୍ତି, ଫସଲର କୌଣସି କ୍ଷତିକରି ପାରନ୍ତି ନାହିଁ । ଆବଶ୍ୟକ ହେଲେ ସରକାର ହେଲିକପଟ୍‌ର ସାହାଯ୍ୟରେ ଔଷଧ ପକାନ୍ତି ।

ସମସ୍ତ ଔଷଧ ବଜାରରେ ମିଳୁଛି । କେଉଁ ପୋକକୁ କେଉଁ ଔଷଧ ବ୍ୟବହାର କରାଯିବ ତାହା ଲେଖାଅଛି । ଆପଣମାନଙ୍କୁ

ସାହାଯ୍ୟ ପାଇଁ ଗ୍ରାମ୍ୟସେବକ ବାବୁ ଅଛନ୍ତି । ଫସଲ ଉତ୍ପାଦନରେ ଆପଣମାନେ ଯେ କୌଣସି ଅସୁବିଧାର ସମ୍ମୁଖୀନ ହେଲେ ଗ୍ରାମସେବକ ବାବୁଙ୍କୁ ଜଣାନ୍ତୁ । କଟକ,ଭୁବନେଶ୍ୱର ଗବେଷଣାଗାରରେ ଶହ ଶହ ବୈଜ୍ଞାନିକ ଯେଉଁ ନୂଆ ନୂଆ କଥା ବାହାର କରୁଛନ୍ତି ସେ ସବୁ ଆପଣମାନଙ୍କ ପାଖରେ ପହଞ୍ଚିବା ଦରକାର । ଆପଣମାନେ ନୂତନ ବୈଜ୍ଞାନକ ପ୍ରଣାଳୀରେ ଫସଲ ଉତ୍ପାଦନ କଲେ ଦେଶର ଖାଦ୍ୟ ଚାହିଦା ପୂରଣ ହେବ ଏବଂ ଆମର ଗବେଷଣାର ଲକ୍ଷ୍ୟ ପୂରଣ ହେବ । ଆମ ପ୍ରଧାନମନ୍ତ୍ରୀ କହିଛନ୍ତି--ପ୍ରତ୍ୟେକ କ୍ଷେତ୍ରରେ ବିଜ୍ଞାନର ବାର୍ତ୍ତାକୁ ଗାଁ ଗହଳିର ଲୋକଙ୍କ ପାଖେ ପହଞ୍ଚାଇବାକୁ ପଡ଼ିବ । ଏତିକି କହି ସେ ତାଙ୍କର ଭାଷଣ ଶେଷ କରିଥିଲେ । ଗ୍ରାମର ଯୁବକ ଚାଷି ଶ୍ରୀ ରବି ପ୍ରଧାନ ଶେଷରେ କୃଷି ପଣ୍ଡିତ ମହାଶୟ ଏବଂ ଗ୍ରାମ ସେବକ ବାବୁଙ୍କୁ, ସେମାନେ କୃଷି ବିଜ୍ଞାନ ବାର୍ତ୍ତାକୁ ଗାଁର କୃଷକମାନଙ୍କ ପାଖରେ ପହଞ୍ଚାଇ ପାରିଥିବାରୁ, ଧନ୍ୟବାଦ ଜଣାଇ ଥିଲେ । ଏହାପରେ ସଭା ସାଙ୍ଗ ହେଲା ।

ସରକାରଙ୍କର କୃଷି ବିଭାଗ ପକ୍ଷରୁ ଗାଁର ଚାଷୀମାନଙ୍କୁ କୃଷି ବିଷୟରେ ଲେଖାଥିବା ଛୋଟ ଛୋଟ ବହିଗୁଡ଼ିକୁ ପୁରୁଖା କୃଷକମାନେ ପଢ଼ିପାରି ୍ଲନି । ସେମାନଙ୍କୁ ଲାଜ ଲାଗିଲା । ସାଙ୍ଗେ ସାଙ୍ଗେ ଖୋଲି୍ଲ 'ଜନ ଶିକ୍ଷା କେନ୍ଦ୍ର' ।




ସନ୍ଧ୍ୟାବେଳେ ସମସ୍ତେ ଲାଗିଲେ ପାଠ ପଢ଼ାରେ । ଗ୍ରାମବାସୀଙ୍କ ମଧ୍ୟରେ ଆସିଗଲା ନୂତନ ଜାଗରଣ ।

ଗ୍ରାମସେବକ ବାବୁ ସବୁଦିନ ଆସି ଗୋପାଳପୁର ଗାଁ କୃଷକମାନଙ୍କ ସହିତ ଆଲୋଚନା କରନ୍ତି । କୃଷକ କୌଣସି ସମସ୍ୟାର ସମ୍ମୁଖୀନ ହେଲେ ସେ ନିଜେ ସମାଧାନ କରନ୍ତି କିମ୍ବା ସରକାରଙ୍କୁ ଜଣାନ୍ତି ।

ଗ୍ରାମର କୃଷକମାନେ ମିଳିତ ହୋଇ ଟ୍ରାକ୍ଟର ସରକାରଙ୍କ ଠାରୁ ଭଡ଼ାରେ ଆଣିଲେ । ଜମି ଠିକ୍ ସମୟରେ ଚାଷ କରାଗଲା । ଗ୍ରାମସେବକ ବାବୁ ଅଧିକ ଅମଳକ୍ଷମ ବିହନ

ଯୋଗାଇ ଦେଲେ । ଧାନ ବୁଣିବା ଯନ୍ତ୍ର ସାହାଯ୍ୟରେ ଜମିର ବିହନ ବୁଣାଗଲା । ବର୍ଷା ହେବାପରେ ଜମିରେ ଧାଡ଼ି ଧାଡ଼ି ଗଛ ଉଠିଛି । ଗଛ ବଡ଼ ହେଲା । ବେଉଷଣ ହେଲା ଗଛ ବଢ଼ିବା ପାଇଁ ରାସାୟନିକ ସାର ପ୍ରୟୋଗ କରାଗଲା । ଗଛ ପିଲ ଦେଇ ସବୁଜ ପତ୍ର ବାହାରି ବଢ଼ିବାକୁ ଲାଗିଲା । ବର୍ଷା ଅଭାବରୁ ଜମିରୁ ପାଣି ସୁଖିଗଲା । ମରୁଡ଼ି ହେବାର ଆଶଙ୍କା ଦେଖାଦେଲା ।

ସାଙ୍ଗେ ସାଙ୍ଗେ ଗାଁର ଚାଷିମାନେ ବ୍ଲକ ଅଫିସିକୁ ଯାଇ ପାଣିପମ୍ପ ଭଡ଼ାରେ ଆଣିଲେ । ପମ୍ପ ସାହାଯ୍ୟରେ ପୋଖରୀ, ନଈରୁ ଜମିରେ ପାଣି ମଡ଼ାଗଲା । ମରୁଡ଼ି ସମସ୍ୟା ଦୂର ହୋଇଗଲା । ଚାଷିମାନଙ୍କ ମୁହଁରେ ଟିକିଏ ହସ ଦେଖା ଦେଲା ବେଳେ ପୁଣି ଆସିଲେ ପଙ୍ଗପାଳ ଦଳ । ପଙ୍ଗପାଳମାନଙ୍କୁ ମାରିବା ପାଇଁ କୀଟ ନାଶକ ଔଷଧ ଆସିଲା ସିଞ୍ଚନ ଯନ୍ତ ଏବଂ ଡକ୍ଟର ସାହାଯ୍ୟରେ ଔଷଧ ଜମିରେ ପଡ଼ିଲା । ପଙ୍ଗପାଳମାନେ ମରିଗଲେ । ସରକାରଙ୍କ ପକ୍ଷରୁ ହେଲିକପଟ୍‌ର ଆସି ପ୍ରସ୍ତୁତ ହୋଇଥିଲା । କୀଟନାଶକ ଔଷଧ ପକାଇବା ପାଇଁ କିନ୍ତୁ ଆବଶ୍ୟକ ପଡ଼ିଲା ନାହିଁ ।

ସବୁଜ ଶସ୍ୟକୁ ଦେଖି କୃଷକମାନଙ୍କ ଆନନ୍ଦ କହିଲେ ନସରେ । ପବନର ତାଳେ ତାଳେ ଧାନକେଣ୍ଡାଗୁଡ଼ିକ ଦୋହଲୁ ଥିଲାବେଳେ କୃଷକ ଯେ କେତେ ଖୁସିହୁଏ କେବଳ ସେ ଜାଣିପାରେ । ଚାଷୀମାନେ ଶସ୍ୟ ଅମଳ କରି ନିଜ ନିଜ ବାଡ଼ିକୁ

ଆଣିଲେ । ବାହନ ଏବଂ ବର୍ଷକର ଧାନରଖି ସରକାରଙ୍କୁ ଚାଷୀମାନେ ବଳକାଧାନ ବିକିଦେଲେ । ଯେତେ ଟଙ୍କା ଖର୍ଚ୍ଚ କରିଥିଲେ । ତାର ବହୁଗୁଣ ଟଙ୍କା ପାଇଲେ । ଯେଉଁମାନେ କୃଷିଋଣ ଆଣିଥିଲେ ସେମାନେ ଋଣ ପରିଶୋଧ କରିଦେଇ ବଳକା ଟଙ୍କାକୁ ଭବିଷ୍ୟତ ପାଇଁ ଜମା ରଖିଲେ ।

## ଶସ୍ୟ ସଂରକ୍ଷଣ

ସବୁ ବର୍ଷ ଚାଷୀ ଯେଉଁ ଶସ୍ୟ ବିହନ ପାଇଁ ସାଇତି ରଖନ୍ତି ସେଥିରୁ ପୋକ କିଛି ନଷ୍ଟ କରିଦିଅନ୍ତି । ଶସ୍ୟକୁ କିପରି ନିରାପଦରେ ରଖାଯାଇ ପାରିବ ସେ ବିଷୟରେ ଜାଣିବା ପାଇଁ ଚାଷୀମାନେ ପୁଣି ଥରେ କୃଷି ପଣ୍ଡିତଙ୍କୁ ନିମନ୍ତ୍ରଣ କଲେ । ଗ୍ରାମସେବକଙ୍କ ଚେଷ୍ଟାରେ ଭୁବନେଶ୍ୱର କୃଷି ମହାବିଦ୍ୟାଳୟର ଶସ୍ୟ ସଂରକ୍ଷଣ ବିଭାଗର ପଣ୍ଡିତ ଚାଷୀମାନଙ୍କୁ ଶିକ୍ଷା ଦେବା ପାଇଁ ଆସିଲେ ।

ଗାଁ ମଣ୍ଡପରେ ସଭାହେଲା । ଗୋପାଳପୁର ଗାଁର ଚାଷୀମାନଙ୍କ ଛଡ଼ା ଅନ୍ୟ ଆଖପାଖର ଗାଁର ଚାଷୀମାନେ ଯୋଗ ଦେଲେ । କୃଷି ପଣ୍ଡିତେ କହିଲେ ପ୍ରଥମେ ଶସ୍ୟକୁ ଭଲ ଭାବରେ ଶୁଖାଇବା ଉଚିତ । ଓଦା ରହିଲେ ସାଇତା ସମୟରେ ଶସ୍ୟ ମରିଯାଏ ଏବଂ ତାହାଁରୁ ଗଜା ଶକ୍ତି କମିଯାଏ । ସାଧାରଣତଃ ଚାଉଳ ଗଣ୍ଡା ପୋକ, ଭମା ପୋକ,

ଶସ୍ୟଭଙ୍ଗ ପୋକ ଚାଉଳ, ଧାନ, ମୁଗ, ବିରି, ଡାଲି ଜାତୀୟ ଶସ୍ୟକୁ ନଷ୍ଟ କରନ୍ତି । ଏମାନଙ୍କୁ ଦମନ କରିବା ପାଇଁ କୀଟ ନାଶକ ବ୍ୟବହାର କରାଯାଇଥାଏ ।

ମୂଷା ମନୁଷ୍ୟର ମୁଖ୍ୟ ଶତ୍ରୁ । ମୂଷା ଯାହା ଖାଏ ତା ଅପେକ୍ଷା ଅଧିକ ନଷ୍ଟ କରେ । ମୂଷା ମାରିବା ପାଇଁ ମିଳୁଥିବା ବିଭିନ୍ନ ବିଷାକ୍ତ ଔଷଧ ଅତି ସାବଧାନରେ ବ୍ୟବହାର କରିବା ଉଚିତ । ଶସ୍ୟକୁ ବାଉଁଶ ଡୋଲିରେ ନରଖି ଧାତବ ଡୋଲିରେ ରଖିବା ଉଚିତ୍ । କୃଷି ବିଭାଗ ପକ୍ଷରୁ ଏହି ଧାତବ ଡୋଲି ରିହାତି ଦରରେ ଯୋଗାଇ ଦିଆଯାଇଛି । ଏଥିରେ ଶସ୍ୟ ରଖିଲେ ମୂଷା ଖାଇ ପାରିବେ ନାହିଁ । ପ୍ରାକୃତିକ ଦୁର୍ଘଟଣାରୁ ମଧ୍ୟ ରକ୍ଷା ପାଇପାରିବ ।

## ଔଷଧ ବ୍ୟବହାରରେ ସାବଧାନତା

ବିଷାକ୍ତ ଔଷଧ ବ୍ୟବହାର କଲାବେଳେ ସାବଧାନ ନହେଲେ ବିପଦ ଅଛି । କୃଷି ପଣ୍ଡିତ ମହାଶୟ କୃଷକମାନଙ୍କୁ ବିଷାକ୍ତ ଔଷଧ ବ୍ୟବହାର ବିଷୟରେ କେତେକ ଉପଦେଶ ଦେଇଥିଲେ । ସେ କହିଲେ— ଔଷଧ ପକାଇ ସାରିବା ପରେ ଭଲଭାବରେ ହାତ ଗୋଡ଼ ଧୋଇବା ଉଚିତ । ଔଷଧ ପକାଯାଉଥିବା କ୍ଷେତକୁ ଗାଈଗୋରୁ ଛାଡ଼ିବା ଉଚିତ

ନୁହେଁ । ନିୟମ ଅନୁସାରେ ଔଷଧର ମାତ୍ରା ଠିକ୍ ରହିବା ଉଚିତ । ଔଷଧର ପରିମାଣ ଅଧିକ ହେଲେ ଗଛର ପତ୍ର ପୋଡ଼ିଯାଏ ଏବଂ କମ୍ ହେଲେ ପୋକ ମରିବ ନାହିଁ । ଔଷଧ ପକାଇବା ପୂର୍ବରୁ ଖାଦ୍ୟ ଉପଯୋଗୀ ଫଳଗୁଡ଼ିକୁ ତୋଳି-ନେବା ଆବଶ୍ୟକ । ବିଜ୍ଞାନକୁ ଠିକ୍ ବାଟରେ ବ୍ୟବହାର ନ କଲେ ସେ ଆମର ବେଶି କ୍ଷତି କରିବ ।

## ଜମି ର

ଜମିର ଉତ୍ପାଦନକ୍ଷମତା ବଢ଼ାଇବା ପାଇଁ ଫସଲ ଅଦଳି ବଦଳି କରିବା ଉଚିତ୍ । କୃଷି ପଣ୍ଡିତଙ୍କ ଉପଦେଶ ଗ୍ରାମବାସୀମାନେ ପାଳନ କରି ଚାଷ କରିବାକୁ ଠିକ୍ କଲେ । ଚାଷୀମାନେ ଜମିରେ ଭଲ ଫସଲ୍ ଅମଳ କଲେ । ସବୁଜ ଶସ୍ୟ ଜମି ଦେଖି ଗ୍ରାମର ଚାଷୀମାନେ ନୂଆ କୃଷିଯୁଗ ଆରମ୍ଭ ହେଲା ବୋଲି ଭାବିଲେ । ଯେଉଁମାନେ କୃଷିକାର୍ଯ୍ୟ ଛାଡ଼ି ଅନ୍ୟ ବ୍ୟବସାୟରେ ଲାଗିଥିଲେ ସେମାନେ କୃଷି କାର୍ଯ୍ୟରେ ମନ ବଳେଇଲେ । ଏହା ଏକ ଲାଭଜନକ ପେଷା ରୂପେ ଗଣିତ ହେଲା । ଗୋପାଳପୁର ଗାଁର ରୂପ ବଦଳି ଗଲା ।

ଗୋପାଳପୁର ଗାଁର ଲୋକମାନେ ଆଧୁନିକ ପ୍ରଣାଳୀରେ କୃଷକର ଖାଇବା ଗଣ୍ଡାକ ଯୋଗାଡ଼ କଲେ ସତ କିନ୍ତୁ ବିଭିନ୍ନ ରୋଗ ଦାଉରୁ ରକ୍ଷା ପାଇପାରିଲେ ନାହିଁ । ଗତବର୍ଷ ହଇଜା ଦେଖାଦେଲା ଗାଁରେ । ଦଶଜଣ ଲୋକ ମରିଗଲେ ।

ଗାଁ ଲୋକମାନେ ଗ୍ରାମ ଦେବତା ପାଖେ ଆକୁଳ ଆବେଦନ କଲେ । ଗାଁକୁ ରକ୍ଷା କରିବା ପାଇଁ ତା ପର ବର୍ଷ ବସନ୍ତ, ହାଡ଼ଫୁଟିରେ ଗାଁର ପିଲା ପଡ଼ିଥିଲେ ।



ରୋଗୀର ଚିକିତ୍ସା କରିବା ବଦଳରେ ରୋଗୀକୁ ଠାକୁରାଣୀ

ହୋଇଛି କହି ପୂଜା କଲେ। ରାମ ପ୍ରଧାନ ଗାଁ କୃଷି ମୂଲିଆ ତାର ତିନୋଟି ପିଲା ମଧ୍ୟରୁ ଗୋଟିଏ ପୋଲିଓ ରୋଗରେ ପଡ଼ି ଚାଲିପାରୁ ନାହିଁ। ଗୋବରା ପ୍ରଧାନ ଧାନ କାଟୁ କାଟୁ ହାତ କଟିଗଲା। କଟା ସ୍ଥାନକୁ କନାରେ ଗୁଡ଼ାଇ ରଖିଲା, ଗୋବରା। କିନ୍ତୁ ଚାରିଦିନ ପରେ ଧନୁଷ୍ଟଙ୍କାର ରୋଗରେ ପଡ଼ି ମରିଗଲା। ଗ୍ରାମବାସୀଙ୍କ ଭିତରେ ଭାଳେଣି-ପଡ଼ିଲା ଶରୀର ଏବଂ ଜୀବନ ରକ୍ଷା କିପରି ହେବ।

ଦିନେ ଗାଁରେ ପ୍ରଚାର କରାଗଲା ସ୍ୱାସ୍ଥ୍ୟ ଶିକ୍ଷା ଶିବିର ପଡ଼ିବ। ଡାକ୍ତରମାନେ ଆସିବେ। ଲୋକଙ୍କୁ ସ୍ୱାସ୍ଥ୍ୟ ଶିକ୍ଷା ଦେବେ। ଗାଁ ମଣ୍ଡପରେ ସଭାହେଲା। ଗାଁର ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଏହି ଶିକ୍ଷା ଶିବିରରେ ଯୋଗଦେଲେ। ପ୍ରଥମେ ଡାକ୍ତର ରାମ ପ୍ରସାଦ ଗ୍ରାମବାସୀମାନଙ୍କୁ ବିଭିନ୍ନ ପ୍ରକାର ରୋଗ ଜଣଙ୍କଠାରୁ ଅନ୍ୟ ଜଣଙ୍କ ପାଖକୁ ଡେଇଁଥିବା ରୋଗ ବିଷୟରେ ଆଲୋଚନା କଲେ।

ସେ କହିଲେ--କୌଣସି ରୋଗ ଠାକୁରାଣୀ ବା ଦେବାଦେବୀଙ୍କ କୋପରୁ ହୁଏନାହିଁ। ଏ ବିଶ୍ୱାସ ଏକ ଅନ୍ଧ ବିଶ୍ୱାସ। ରୋଗର କାରଣ 'ଜୀବାଣୁ'। ଏ ଗୁଡ଼ିକ ଖାଲି ଆଖିରେ ଆମକୁ ଦେଖାଯାଆନ୍ତି ନାହିଁ କିନ୍ତୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିଲେ ଆପଣମାନେ ଏସବୁ ଜୀବାଣୁମାନଙ୍କୁ ଦେଖି ପାରିବେ।

ଆପଣ ହଇଜା କେଡ଼େ ମାରାତ୍ମକ ରୋଗ ଜାଣିଛନ୍ତି । ଜଣେ ଗ୍ରାମବାସୀ ଠିଆ ହୋଇ କହିଲେ, ବାବୁ ! ସେ ରୋଗ ନାଁ ଧରନ୍ତୁ ନାହିଁ । ଆମ ଗାଁରେ ଏ ରୋଗ



ଅଣୁବୀକ୍ଷଣ ଯନ୍ତ୍ର

କୋକୁଆ ଭୟ ସୃଷ୍ଟି କରିଛି । ଡାକ୍ତରବାବୁ କହିଲେ ଏହି ରୋଗର କାରଣ କିଏ ଜାଣିଛ ? କମା ବସିଲସ୍ ନାମକ ଜୀବାଣୁ । ଗ୍ରାମବାସୀମାନେ ସହଜରେ ବିଶ୍ୱାସ କଲେନି ।

୨୩।

ଡାକ୍ତରବାବୁ ସାଙ୍ଗେ ସାଙ୍ଗେ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଜୀବାଣୁକୁ ଜଣ ଜଣକୁ ଡାକି ଦେଖାଇଦେଲେ । ଆଖିରେ ଦେଖିଲା ପରେ ସେମାନେ ବିଶ୍ୱାସ ନ କରିବେ ବା କିପରି ? ଜୀବାଣୁଗୁଡ଼ିକ ଯନ୍ତ୍ର ସାହାଯ୍ୟରେ ଦେଖି ପ୍ରଥମେ ଡ଼ରି ଯାଇଥିଲେ ପରେ ଏହାକୁ କିପରି ମାରିବାକୁ ହେବ ଡାକ୍ତରବାବୁଙ୍କୁ ପଚାରିଲେ ।

ଡାକ୍ତରବାବୁ କହିଲେ--କେବଳ ହଇଜା ନୁହେଁ, ବସନ୍ତ, ମ୍ୟାଲେରିଆ, ଯକ୍ଷ୍ମା, ଯାଦୁ, କାଛୁ, ଇତ୍ୟାଦି ରୋଗ ଜୀବାଣୁମାନଙ୍କ ଯୋଗୁ ହୋଇଥାଏ । ବସନ୍ତ ରୋଗର ଜୀବାଣୁ ନାମ ହେଲା, ଭାଇରସ୍, ମ୍ୟାଲେରିଆ ରୋଗର ଜୀବାଣୁ ନାମ, ପ୍ଲାସୋ ମୋଡ଼ିୟମ୍, ଟାଇଫଡ଼େ ଜୀବାଣୁ ନାମ ଟାଇଫସ୍ ବାସିଲସ୍ ଇତ୍ୟାଦି । ଏହି ଜୀବାଣୁମାନେ କୌଣସି ମତେ ଆମ ଶରୀରରେ ପ୍ରବେଶ କରି ରୋଗ ସୃଷ୍ଟି କରନ୍ତି ।



# ରୋଗର ପ୍ରସାର

ହଇଜା ରୋଗ ଜୀବାଣୁ ଖାଦ୍ୟ କିମ୍ବା ପାଣି ନେଇ ଆମ ଶରୀର ଭିତରକୁ ଆସନ୍ତି । ମାଛି ଆମର ପ୍ରଧାନ ଶତ୍ରୁ ।






ମାଛି ଅଣ୍ଡା ଲାର୍ଭା ପଉପା

ସେମାନେ ହଇଜା ଜୀବାଣୁକୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇଯାଆନ୍ତି । ହଇଜା ରୋଗ ଦେଖାଦେବା କ୍ଷଣି ଆପଣମାନେ ପାଣିକୁ ସିଝାଇ ଥଣ୍ଡା କରି ପିଇବେ । ମାଛି ବସା ଖାଦ୍ୟ ଖାଇବେ ନାହିଁ । ଗାଁର କୂଅ, ପୋଖରୀ ପାଣିକୁ ସରକାର ଦେଉଥିବା ବିଶୋଧନ ବ୍ଲିଚିଙ୍ଗପାଉଡ଼ର ପକାଇ ବିଶୋଧନ କରିବେ ଏବଂ ସମସ୍ତେ ହଇଜା ପ୍ରତିଷେଧକ ଇଞ୍ଜେସନ୍ ନେବେ । ଏହି ଇଞ୍ଜେସନ୍ ନେଲେ

ହଇଜା ରୋଗୀର ଜୀବାଣୁକୁ ମାରିବା ପାଇଁ ଏକ ପ୍ରକାର ଶକ୍ତି ଆମ



ଦେହରେ ତିଆରି ହେବ । ଜୀବାଣୁ ଶରୀର ଭିତରକୁ କୌଣସି

ମତେ ଗଲେ ମଧ୍ଯ ରୋଗ ସୃଷ୍ଟି କରିପାରିବେ ନାହିଁ । ହଇଜା ରୋଗୀକୁ ପାଖରେ ଥିବା ଡାକ୍ତରଖାନାକୁ ନେଇଯିବା ଉଚିତ । ନଚେତ୍ ରୋଗୀକୁ ଅଲଗା ଘରେ ରଖି ଚିକିତ୍ସା କରିବା



ଉଚିତ । ଆପଣମାନେ ସମସ୍ତେ ସାବଧାନ ରହିଲେ ହଇଜା ରୋଗ ସମ୍ପୂର୍ଣ୍ଣ ଜବତ୍ ହୋଇଯିବ । ଗ୍ରାମବାସୀମାନେ ଡାକ୍ତର ବାବୁଙ୍କ ଉପଦେଶ ଶୁଣି ଖୁସି ହୋଇଗଲେ । ସେମାନଙ୍କର ଦୀର୍ଘଦିନର ଥିବା ଏହି ରୋଗ ପ୍ରତି ଡର ଭାଙ୍ଗିଗଲା ।

# ରୋଗର ପ୍ରତିଷେଧ

ଡାକ୍ତରବାବୁ ପୁଣି କହିଲେ--ବସନ୍ତ ରୋଗ ନହେବା ପାଇଁ ଆପଣମାନେ ସମସ୍ତେ ଗୋବୀଜ ଟୀକା ନେବା ଉଚିତ । ଏହି ଟୀକା ମାଗଣାରେ ସରକାରଙ୍କ ତରଫରୁ ଯୋଗାଇ

ପୋଲିଓ (ଘାଲୁକ) ପ୍ରତିଷେଧକ



ଦିଆଯାଉଛି । ଛୋଟ ପିଲାମାନେ ନ ଡରି ସମସ୍ତେ ଏହି ଟୀକା ନେବା ଉଚିତ୍ । ଏହି ଟୀକା ଆମ ଶରୀରରେ ବସନ୍ତ ରୋଗର ଜୀବାଣୁକୁ ମାରିବା ପାଇଁ ଏକ ଶକ୍ତି ତିଆରି କରେ ।

ଶରୀରକୁ ବିଭିନ୍ନ ରୋଗରୁ ରକ୍ଷା କରିବା ପାଇଁ ବୈଜ୍ଞାନିକମାନେ ବିଭିନ୍ନ ଇଞ୍ଜେକ୍ସନ୍ ବାହାର କରିଛନ୍ତି ।

ପୋଲିଓ ରୋଗ, ଡ଼ିପ୍‌ଥେରିଆ, ଧନୁଷ୍ଟଙ୍କାର ଭବିଷ୍ୟତରେ ନ ହେବା ପାଇଁ ଆଜି ପିଲାମାନଙ୍କୁ ଡାକ୍ତରଖାନା ମାନଙ୍କରେ ଇଞ୍ଜେକ୍‌ସନ୍ ଦିଆଯାଉଛି । ଆପଣମାନଙ୍କୁ ଅନୁରୋଧ ଆପଣମାନେ ପିଲା ଜନ୍ମ ହେବାର ବର୍ଷକ ମଧ୍ୟରେ ଏହି ଇଞ୍ଜେକ୍‌ସନ୍ ପିଲାମାନଙ୍କୁ ଦେଇଦିଅନ୍ତୁ । ଭବିଷ୍ୟତରେ




ପିଲାମାନଙ୍କୁ ଏହି ରୋଗ କେବେ ହେବ ନାହିଁ । ଡାକ୍ତର ବାବୁଙ୍କଠାରୁ ଏ ସବୁକଥା ଶୁଣି ଗ୍ରାମବାସୀମାନେ ବିଶେଷ ଖୁସିହେଲେ । ଡାକ୍ତରବାବୁ ଗ୍ରାମବାସୀମାନଙ୍କୁ ଧନ୍ୟବାଦ ଦେଇ ଭାଷଣ ଶେଷ କରିଥିଲେ ।

ଗାଁଲୋକମାନଙ୍କର ବିଭିନ୍ନ ସଂକ୍ରାମକ ରୋଗପ୍ରତି ଥିବା ଡ଼ର ଭାଙ୍ଗିଗଲା । ଡାକ୍ତରବାବୁ କହିବା ଅନୁସାରେ ଯେଉଁମାନଙ୍କର ଛୋଟପିଲା ଥିଲା ସମସ୍ତେ ଗାଁ ପାଖରେ ଥିବା ଡାକ୍ତରଖାନାକୁ ଯାଇ ରୋଗ ପ୍ରତିଷେଧକ ଇଞ୍ଜେକ୍‌ସନ୍ ନେଇ ଦେଲେ ।

ବ୍ଲିଚିଙ୍ଗପାଉଡ଼ର ପକାଇ ପାଣିକୁ ବିଶୋଧନ କଲେ । ପାଣିକୁ ଫୁଟାଇ ଥଣ୍ଡା କରି ସମସ୍ତେ ପିଇଲେ । ସେହି ଦିନଠାରୁ ହଇଜା, ବସନ୍ତ, ଗାଁରେ ଦେଖାଦେଇନି ।

ଗାଁରେ ସମସ୍ତେ ମଶାରୀ ବ୍ୟବହାର କରି ଶୋଇଲେ । ଗାଁ ପୋଖରୀରେ ଗାଈ ଗାଧୋଉଥିଲେ । ଅପରିଷ୍କାର



କରୁଥିଲେ । ବର୍ତ୍ତମାନ ପୋଖରୀ ଅପରିଷ୍କାର ନକରି ଗାଁ ପୋଖରୀରୁ ଦଳ ସଫାକରି ମଶାମରା ତେଲ ପକାଇଲେ । ନାଳ ନର୍ଦ୍ଦମାରେ ଜୀବାଣୁ ନାଶକ ତେଲ ଏବଂ ମଶାମରା ତେଲ ପଡ଼ିଲା । ଗାଁରୁ ଆସ୍ତେ ଆସ୍ତେ ମ୍ୟାଲେରିଆ ଏବଂ

ବାତଜ୍ୱର କମି ଆସିଲା ଲୋକେ ଜାଣିଲେ ଯେ ମଶା



କ୍ୟୁଲେକସ୍ ମଶା ଅଣ୍ଡା, ଲର୍ଭା

ଏହି ରୋଗପାଇଁ ଦାୟୀ । ଆନୋଫେଲିସ୍ ମଶା ମ୍ୟାଲେରିଆ ଏବଂ କ୍ୟୁଲେକ୍ସ୍ ମଶା ବାତଜ୍ୱରର କାରଣ ।



# ଖାଦ୍ୟସାର ଜୀବନୀକା

ଗୋପାଳପୁର ଗାଁ ଲୋକମାନେ ଡ଼ିଆଁ ରୋଗରୁ ରକ୍ଷା ପାଇଗଲେ ସିନା କେତେକ ସାଧାରଣ ରୋଗ ତାଙ୍କ ଜୀବନକୁ ଉପଭୋଗ କରିବାରେ ବାଧା ଦେଲା । କେତେକ ରାତ୍ରିରେ ଭଲ ଭାବରେ ଦେଖି ପାରିଲେ ନାହିଁ, କେତେକଙ୍କ ତୁଣ୍ଡ ଘା ହେଲା, ଚର୍ମ ରୋଗ, ଦାନ୍ତ ପୋକ ଖାଇବା, ହାଡ଼ ନରମ ହେବା, ଦାନ୍ତ ମାଢ଼ିରୁ ରକ୍ତ ପଡିବା ଇତ୍ୟାଦି ।

ଏହି ରୋଗର କାରଣ ଜାଣିବା ଗ୍ରାମବାସୀଙ୍କ ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ । ସମସ୍ତେ ଚିନ୍ତିତ ଥିଲା ବେଳେ ଆଉ ଏକ ଡ଼ାକ୍ତର ଦଳ ଗ୍ରାମରେ ପହଞ୍ଚିଲେ । ଗ୍ରାମବାସୀଙ୍କ ଆନନ୍ଦ କହିଲେ ନ ସରେ । କେବଳ ଗୋପାଳପୁର ଗ୍ରାମବାସୀ ନୁହଁନ୍ତି ଆଖପାଖର ଲୋକମାନେ ମଧ୍ୟ ସଭାକୁ ଆସିଲେ । ଲୋକମାନଙ୍କଠାରୁ ବିଭିନ୍ନ ରୋଗର ବିବରଣୀ ସଂଗ୍ରହ କଲେ । ଏହାର କାରଣ ଓ ପ୍ରତିକାର ବିଷୟରେ ତାଙ୍କର ଭାଷଣ ଆରମ୍ଭ କଲେ ।

ସେ କହିଲେ-ଜୀବାଣୁ ଜାତ ରୋଗଛଡ଼ା ଆଉ କେତେକ ସାଧାରଣ ରୋଗ ଅଛି, ତାକୁ ଖାଦ୍ୟାଭାବ ଜନିତ ରୋଗ କହନ୍ତି । ଅନ୍ଧାରକଣା, ତୁଣ୍ଡ ଘା, ଦାନ୍ତରୁ ରକ୍ତ ପଡ଼ିବା, କୌଣସି ଜାଗା କଟିଗଲେ ରକ୍ତ ବୋହିବା ବନ୍ଦ ନ ହେବା, ନରମ ହେବା,

ଏହିଭଳି କେତେକ ରୋଗ କେତେକ ଖାଦ୍ୟସାର ଅଭାବରୁ ହୋଇଥାଏ । ଏହି ଖାଦ୍ୟସାରକୁ ଜୀବନିକା ବା ଭିଟାମିନ୍ କହନ୍ତି । ଭିଟାମିନ୍ ଏ: ଅଭାବରେ ଅନ୍ଧାରକଣା ରୋଗ ହୋଇଥାଏ । ଏହି ରୋଗର ନିରାକରଣ ପାଇଁ ଭିଟାମିନ୍ 'ଏ' ବଟିକା ଖାଇଲେ ହେବ କିମ୍ୱା କୋଶଳା ଶାଗ, ଦୁଧ, ଅଣ୍ଡା, ମାଂସ ଖାଇଲେ ଚଳିବ । ସେହିଭଳି ଭିଟାମିନ୍ 'ବି' ଅଭାବରେ ତୁଣ୍ଡ ଘା ହୋଇଥାଏ । ପେଲେଗ୍ରା ନାମକ ଚର୍ମ ରୋଗ ଏବଂ ବେରି ବେରି ନାମକ ସ୍ନାୟୁରୋଗ ହୁଏ ଭୋକ କମିଯାଏ ଏବଂ ଖାଦ୍ୟ ହଜମ ହୁଏ ନାହିଁ ।

ଏହି ଖାଦ୍ୟସାର ମାଣ୍ଡିଆ ଜାଉ, ଖଟା ପଖାଳ ଭାବରେ ଥାଏ । ଭିଟାମିନ୍ 'ଏ' ଅଭାବରେ ଦାନ୍ତ ମୂଳରୁ ରକ୍ତ ପଡ଼େ ଏବଂ ଆଣ୍ଠୁଗଣ୍ଠି ଫୁଲେ, ଶରୀରର କୌଣସି ଅଂଶ ସାମାନ୍ୟ ଆଘାତ ହେଲେ ରକ୍ତସ୍ରାବ ହୁଏ । ବିଭିନ୍ନ ପ୍ରକାର କଞ୍ଚା ଫଳରେ ଏହି ଖାଦ୍ୟସାର ଥାଏ । ଭିଟାମିନ୍ 'ଘ' ଅଭାବରେ ହାଡ଼ ନରମ ଓ ବଙ୍କା ହୋଇଯାଏ । ଏହାକୁ ରିକେଟ୍ କହନ୍ତି ।

ଏହି ଖାଦ୍ୟସାର ସକାଳ ସୂର୍ଯ୍ୟ ରଶ୍ମି ଏବଂ ପାଳଙ୍ଗ ଶାଗରେ ଥାଏ । ଭିଟାମିନ୍ 'ଙ' ଅଭାବରେ ସନ୍ତାନ ଉତ୍ପାଦନ କରିବା ଶକ୍ତି କମିଯାଏ । ଏହି ଖାଦ୍ୟସାର ଗଜାମୁଗ ଏବଂ ଗଜା ବୁଟରେ ଥାଏ ।

ଗାଁରେ ମିଳୁଥିବା ବିଭିନ୍ନ ଶାଗ, ପିନିପରିବା, ମାଛ, ଡାଲି ଏବଂ ଭାତ ନିୟମିତ ଖାଇଲେ ସାଧାରଣ ରୋଗ ହେବନାହିଁ । ବେଳେବେଳେ କୌଣସି ଏକ ଭିଟାମିନ୍ ଅଭାବ ପଡ଼ିଲେ ରୋଗହୁଏ । ଖାଦ୍ୟ ଅଭାବ ପୂରଣ କରିବା ସେହି ଖାଦ୍ୟସାର ଥିବା ଖାଦ୍ୟ ଅଧିକା ଖାଇବାକୁ ପଡ଼ିଥାଏ ।

ଏହାଛଡ଼ା ଔଷଧ ଦୋକାନରେ ବିଭିନ୍ନ ଭିଟାମିନ୍ ବଟିକା ମିଳୁଛି । କିନ୍ତୁ ଆପଣମାନେ ଶୁଖୁଆ ବାସି ଖାଦ୍ୟ, ଖାଇବା ଉଚିତ ନୁହେଁ । ଖାଦ୍ୟ ଅଭ୍ୟାସ ଆପଣମାନେ ପରିବର୍ତ୍ତନ କଲେ ସାଧାରଣ ରୋଗରୁ ଆପଣମାନେ ରକ୍ଷା ପାଇପାରିବେ ।

ଗ୍ରାମବାସୀମାନେ ଡ଼ାକ୍ତର ଠାରୁ କେତେକ ସାଧାରଣ ରୋଗ ତାର କାରଣ ଏବଂ ପ୍ରତିକାର ବିଷୟ ଜାଣିବା ପରେ ସେମାନଙ୍କ ମୁହଁରେ ହସ ଦେଖାଦେଇ ଥିଲା । ଶରୀର ପାଉଥିବା ବିଭିନ୍ନ କଷ୍ଟଦାୟକ ରୋଗରୁ ଶରୀରକୁ ରକ୍ଷା କରିପାରିବେ ଏ ଆଶା ସୃଷ୍ଟି ହେଲା । ଗ୍ରାମବାସୀମାନେ ଡ଼ାକ୍ତରବାବୁଙ୍କୁ ଧନ୍ୟବାଦ ଦେବାପରେ ସଭା ଭାଙ୍ଗିଲା ।

# ଆଧୁନିକ ରୋଗ ନିର୍ଣ୍ଣୟ ପ୍ରଣାଳୀ

କେତେକ ମାରାତ୍ମକ ରୋଗ ଲୋକମାନେ ଜାଣି ପାରନ୍ତି ନାହିଁ । ସେହି ରୋଗ କ୍ରମେ ବଢ଼ି ଶେଷରେ ରୋଗୀକୁ ମାରିଦିଏ । ରୋଗୀକୁ ଜାଣିବା ପାଇଁ, ରକ୍ତ ପରୀକ୍ଷା, ଝାଡ଼ା ପରୀକ୍ଷା ଓ ପରିସ୍ରା ପରିକ୍ଷା ବ୍ୟବସ୍ଥା ସାଧାରଣ ଡ଼ାକ୍ତରଖାନାରେ ବ୍ୟବସ୍ଥା କରାଯାଇଛି । ରୋଗୀମାନେ ମାଗଣାରେ ପରୀକ୍ଷା



କରିପାରିବେ । ଶରୀରର କୌଣସି ହାଡ ଭାଙ୍ଗିଗଲେ ଆମେ ଜାଣିପାରୁ ନାହୁଁ । ଏକ୍ସରେ ଯନ୍ତ୍ରଦ୍ୱାରା ଶରୀରର ଯେ କୌଣସି ଅଂଶକୁ ଦେଖିପାରିବା ଓ ତାର ଚିକିତ୍ସା କରିପାରିବା । ଗ୍ରାମବାସୀମାନଙ୍କ ବିଭିନ୍ନ ରୋଗ ଏବଂ ତାର ଚିକିତ୍ସା ପ୍ରଣାଳୀ ବିଷୟରେ ଜାଣିବା ପାଇଁ ଆଗ୍ରହ ବଢ଼ିଲା । କଟକ ବିଜ୍ଞାନ ପ୍ରଚାର ସମିତିର ଏକ ବୈଠକ ବସିବା ଠିକ୍ ହେଲା । ଗ୍ରାମବାସୀ ବିଶେଷ

ଆଗ୍ରହ ପ୍ରକାଶ କଲେ । କଟକ ବଡ଼ ଡାକ୍ତରଖାନାରେ ଡାକ୍ତରମାନେ ପହଞ୍ଚିଲେ । ସେମାନେ ଡାକ୍ତରଖାନାରୁ ଶରୀରର ବିଭିନ୍ନ ରୋଗୀ ଅଙ୍ଗ ଦେଖିଥିଲେ । ହୃତପିଣ୍ଡ, ଫୁସ୍‌ଫୁସ୍, ପାକସ୍ଥଳି, ବୃକକ୍, ମସ୍ତିଷ୍କ ଓ କଲିଜାକୁ ଲୋକଙ୍କୁ ଦେଖାଇଲେ । ଏହି ଅଙ୍ଗର ରୋଗ ବିଷୟରେ ବୁଝାଇ ଦେଲେ । ଲୋକମାନେ ଆଶ୍ଚର୍ଯ୍ୟ ହେଲେ ଏସବୁ ଦେଖି । କୌଣସି ଅଙ୍ଗ ଖରାପ ହେଲେ ତାକୁ କାଟି ବାହାର କରି ଦିଆଯାଉଛି । ରୋଗୀ କଷ୍ଟ ପାଉନାହିଁ । ଆଧୁନିକ ଚିକିତ୍ସା ବିଜ୍ଞାନ ସଫଳ ଅଗ୍ରଗତି ମଣିଷ ଜୀବନକୁ ସରସ, ସୁନ୍ଦର କରିପାରନ୍ତି, ଏହି କଥା ଡାକ୍ତରମାନେ ଲୋକମାନଙ୍କୁ ବୁଝାଇ ଦେଇଥିଲେ ।



# ପରିବାର ନିୟନ୍ତ୍ରଣ

ପରିବାର କଲ୍ୟାଣ ବିଭାଗ ଡାକ୍ତରମାନେ ଗୋପାଳପୁର ଗାଁରେ ପହଞ୍ଚିଲେ । ଗ୍ରାମବାସୀଙ୍କ ଆଗ୍ରହ ବଢ଼ିଯାଇଛି । ସେମାନେ ପରିବାର କଲ୍ୟାଣ ବିଷୟରେ ଜାଣିବାକୁ ଚାହିଁଲେ । ବୈଜ୍ଞାନିକ ପ୍ରଣାଳୀରେ କିପରି ଜନ୍ମ ନିୟନ୍ତ୍ରଣ କରାଯାଇ ପାରିବ ଲୋକଙ୍କୁ ବୁଝାଇ ଦେଲେ । ଛୋଟ ପରିବାର ହେଲେ ଦେଶର କିପରି ଉପକାର ହେବ ଡାକ୍ତରବାବୁ ବୁଝାଉଥିଲେ । ଗ୍ରାମବାସୀମାନେ ଏହି ଯୋଜନାର ଆବଶ୍ୟକତା ବୁଝିବା ପରେ ସମସ୍ତ ସ୍ତ୍ରୀ ପୁରୁଷ ବନ୍ଧ୍ୟାକରଣ କରିଥିଲେ । ଚିକିତ୍ସା ବିଜ୍ଞାନର ସମସ୍ତ ସୁବିଧା ସୁଯୋଗ ଲୋକମାନଙ୍କ ପାଖରେ ପହଞ୍ଚିପାରିଥିବାରୁ ସେମାନେ ନିଜକୁ ଭାଗ୍ୟବାନ ମଣିଲେ ।

ସବୁଜ ବିପ୍ଳବ ଫଳରେ ଗୋପାଳପୁରବାସୀ ନିଜର ଖାଦ୍ୟ ଗଣ୍ଡାକ ଯୋଗାଡ କରିପାରିଥିଲେ । ବର୍ତ୍ତମାନ ଭୋଗୁଥିବା ରୋଗ ଯନ୍ତ୍ରଣାରୁ ଶରୀରକୁ ରକ୍ଷା କରିପାରିଛନ୍ତି । ବିଜ୍ଞାନର ଜୟଯାତ୍ରା ଜୀବନକୁ ସରସ, ସୁନ୍ଦର, ଉପଭୋଗ୍ୟ କରିପାରିଛି । ଚିକିତ୍ସା ବିଜ୍ଞାନ ମଣିଷ ଜୀବନ ଧାରକୁ ବଦଳାଇ ନେଇଛି ।

